

# କାବୁଲିବାଲା


ରବୀନ୍ଦ୍ରନାଥ ଠାକୁର

ଅନୁବାଦ
ହରିଶ୍ଚନ୍ଦ୍ର ବେହେରା

ଅଳଙ୍କରଣ
ପାର୍ଥ ସେନଗୁପ୍ତ



ISBN 978-81-237-5380-5

ପ୍ରଥମ ସଂସ୍କରଣ 2008 (ଶକାବ୍ଦ 1930)

Kabuliwala (*Oriya*)

**ଟ. 25.00**

ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ନେହେରୁ ଭବନ, 5, ଇନ୍‌ଷ୍ଟିଚ୍ୟୁସନାଲ ଏରିଆ,
ଫେଜ୍ - II, ବସନ୍ତ କୁଞ୍ଜ, ନୂଆ ଦିଲ୍ଲୀ - 110070 କର୍ତ୍ତୃକ ପ୍ରକାଶିତ ।

ନେହେରୁ ବାଳ ପୁସ୍ତକାଳୟ

# କାବୁଲିବାଲା


ରବୀନ୍ଦ୍ରନାଥ ଠାକୁର

ଅନୁବାଦ : ହରିଶ୍ଚନ୍ଦ୍ର ବେହେରା

ଚିତ୍ରାଙ୍କନ : ପାର୍ଥ ସେନଗୁପ୍ତା







ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ



ମୋର ପାଞ୍ଚ ବର୍ଷ ବୟସର ସାନ ଝିଅ ମିନି କଥା ନକହି ଗୋଟିଏ ମୁହୂର୍ତ୍ତ ରହିପାରେନି । ଏହି ସଂସାରରେ ଜନ୍ମଗ୍ରହଣ କରି ସେ ଭାଷା ଶିଖିବା ଲାଗି କେବଳ ଗୋଟିଏ ବର୍ଷ ସମୟ ନେଇଥିଲା । ଏହାପରେ ସେ ଯେତିକି ସମୟ ଜାଗ୍ରତ ଥାଏ ସେଥିରୁ ଦଣ୍ଡେ ମଧ୍ୟ ଚୁପ୍ ନଥାଏ । ତା'ର ମାଆ କେତେଥର ଧମକ ଦେଇ ତା' ମୁହଁ ବନ୍ଦ କରିଦିଅନ୍ତି ମାତ୍ର ମୁଁ ତାହା କରିପାରେନି । ମିନି ଚୁପ୍‌ଚାପ୍ ରହିଲେ ଏମିତି ଅସ୍ୱାଭାବିକ ଦେଖାଯାଏ ଯେ ମୁଁ ବେଶି ସମୟ ତାହା ସହ୍ୟ କରିପାରେନି ।

ଆଜି ସକାଳେ ମୁଁ ମୋ ଉପନ୍ୟାସର ସତର ଅଧ୍ୟାୟ ଯେତେବେଳେ ଲେଖିବାକୁ ଆରମ୍ଭ କରିଛି, ସେହି ସମୟରେ ମିନି ଆସି ପହଞ୍ଚିଗଲା । ଆସିବା ମାତ୍ରେ ଆରମ୍ଭ କରିଦେଲା, "ବାବା, ଏଇ ଯେ ରାମ ଦୟାଲ ଦରୱାନ, ସେ 'କାକ'କୁ କୁଆ କହୁଥିଲା । ସେ କିଛି ବି ଜାଣେନି, ନା ବାବା ?"

ମୁଁ ଏଇ ପୃଥିବୀରେ ଭାଷାର ବିଭିନ୍ନତା ନେଇ ତାକୁ ବୁଝେଇବାକୁ ଚେଷ୍ଟା କରିବା ମାତ୍ରେ ସେ ଦ୍ୱିତୀୟ ପ୍ରସଙ୍ଗକୁ ଚାଲିଗଲା । କହିଲା, "ଦେଖ ବାବା, ଭୋଲା କହୁଥିଲା, ଆକାଶରେ ହାତୀ ତା' ଶୁଣ୍ଢ ଦ୍ୱାରା କୁଆଡ଼େ ଜଳ ପକାଏ, ତାହା ହିଁ ବର୍ଷା ହୁଏ । ଏ ମା ! ଭୋଲାଟା କି ମିଛୁଆ ! ଯେତେବେଳେ ଦେଖିବ, ବେକାରଟାରେ ବକ୍‌ବାଜି କରୁଥିବ ।"

ଏଥର ବି ମୋ ମତାମତକୁ ଟିକିଏ ଅପେକ୍ଷା ନକରି ପୁଣି ଆରମ୍ଭ କଲା, "ବାବା, ମାଆ ତୁମର କିଏ ?"

ମନେ ମନେ କହିଲି, "ଶାଳୀ", କିନ୍ତୁ ମୁହଁରୁ ବାହାରିଲା, "ମିନି, ଏବେ ତୁ ଯା', ଭୋଲା ସାଥିରେ ଖେଳିବୁ । ମୋର ଏଇନା କାମ ଅଛି ।"

ସେଇଠୁ ସେ ମୋ ଲେଖିବା ଟେବୁଲ ତଳେ ମୋରି ପାଦ ପାଖରେ ବସି ପଡ଼ିଲା, ତା'ର ଦୁଇ ହାତକୁ ଆଣ୍ଠୁ ଉପରେ ରଖି ଖୁବ୍ ଶୀଘ୍ର 'ଆଗଡୁମ୍ ବାଗଡୁମ୍' ଖେଳିବାକୁ ଲାଗିଲା । ଏହି ସମୟରେ ମୋର ସତର ଅଧ୍ୟାୟରେ ପ୍ରତାପ ସିଂହ କାଞ୍ଚନମାଳାକୁ ସାଥିରେ ଧରି ଘନ ଅନ୍ଧାର ରାତିରେ କାରାଗାରର ଉଚ୍ଚ ପାଚେରି ଉପରୁ ତଳେ ପ୍ରବାହିତ ନଦୀକୁ ଡେଇଁବା ଲାଗି ପ୍ରସ୍ତୁତ ହେଉଥିଲା ।

ମୋ ଘରଟା ଠିକ୍ ରାସ୍ତା କଡ଼ରେ । ହଠାତ୍ ମିନି ତା'ର 'ଆଗଡୁମ୍ ବାଗଡୁମ୍' ଖେଳ ବନ୍ଦ କରି ଝରକା ପାଖକୁ ଦଉଡ଼ିଗଲା ଏବଂ ଖୁବ୍ ବଡ଼ ପାଟିରେ ଡାକିଲା, "କାବୁଲିବାଲା, ଏ କାବୁଲିବାଲା ?"

ଜଣେ ଡେଙ୍ଗା କାବୁଲିବାଲା ମଇଳା ଢିଲା ପୋଷାକ ପିନ୍ଧି, ମୁଣ୍ଡରେ ପଗଡ଼ି, କାନ୍ଧରେ ଲମ୍ବା ଝୁଲି, ହାତରେ ଦୁଇ ଚାରିଟା



ଅଙ୍ଗୁର ବାକ୍ସ ଧରି ଢଳିଢଳି ସେଇ ରାସ୍ତା ଦେଇ ଯାଉଥିଲା । ତାକୁ ଦେଖି ମୋ ଗୋହ୍ଲାଝିଅର କେଉଁ ଭାବ ଉଦୟ ହେଲା ତାହା କହିବା କଷ୍ଟ । ଖୁବ୍ ବଡ଼ ପାଟିରେ ତାକୁ ଡାକ ପକେଇଲା । ମୁଁ ଭାବିଲି, କାନ୍ଧରେ ଝୁଲି ପକେଇ ବର୍ତ୍ତମାନ ବିପଦଟିଏ ଆସି ପହଞ୍ଚିଯିବ । ମୋର ସତର ଅଧ୍ୟାୟ ଆଜି ଆଉ ଶେଷ ହେବନି ।

ମିନିର ଡାକଶୁଣି କାବୁଲିବାଲା ହସି ହସି ଆମ ଘର ଆଡ଼କୁ ମୁହଁ ବୁଲେଇବା ମାତ୍ରେ ମିନି ଏକାନିଃଶ୍ୱାସରେ ଘର ଭିତରକୁ ଦୌଡ଼ି ପଳାଇଲା । କେଉଁଠି ବି ତା'ର ଚିହ୍ନବର୍ଣ୍ଣ ଦେଖାଗଲାନି । ତା' ମନ ଭିତରେ ଏକ ଭୁଲ୍ ଧାରଣା ଥିଲା ଯେ ଏହି ଲମ୍ବା ଝୁଲି ଭିତରେ ଖୋଜିଲେ ତା' ପରି ଦୁଇ ଚାରିଟା ପିଲା ମିଳିଯାଇପାରେ ।

କାବୁଲିବାଲା ଆସି ହସ ହସ ମୁହଁରେ ମୋତେ ସଲାମ କରି ଠିଆହେଲା । ମୁଁ ଭାବିଲି, ଯଦିଓ ପ୍ରତାପ ସିଂହ ଏବଂ କାଞ୍ଚନମାଳାର ଅବସ୍ଥା ଅତ୍ୟନ୍ତ ବିପଦପୂର୍ଣ୍ଣ ତଥାପି ଲୋକଟାକୁ ଘରକୁ ଡାକି ତା' ପାଖରୁ କିଛି ନ କିଣିବାଟା ଅଭଦ୍ରାମି ହେବ ।

କିଛି ମଧ୍ୟ କିଣାଗଲା । ପରେ ପରେ ଦୁଇଚାରି ପଦ ଗପସପ ବି ହେଲା । ଆବ୍ଦର ରହମତ୍ ନାମକ ଏହି କାବୁଲିବାଲା ସହ ଋଷ, ଇଂରେଜ ଠାରୁ ଆରମ୍ଭ କରି ସୀମାନ୍ତ ରକ୍ଷାନୀତି ସମ୍ପର୍କରେ ଅନେକ ଗପ ହେଲା । ଶେଷରେ ଯିବାକୁ ଉଠିବା ସମୟରେ ସେ ପଚାରିଲା, "ବାବୁ, ତୁମ ଝିଅଟି କୁଆଡ଼େ ଗଲା ?"

ମିନିର ଅମୂଳକ ଭୟ ଭାଙ୍ଗିବା ଲକ୍ଷ୍ୟରେ ତାକୁ ଅନ୍ତଃପୁରରୁ ଡାକି ଆଣିଲି । ସେ ମୋତେ ଜାବୁଡ଼ି ଧରି କାବୁଲିବାଲାର ମୁହଁ ଆଉ ଝୁଲି ଆଡ଼କୁ ସନ୍ଦେହଭରା ଆଖିରେ ଅନେଇ ରହିଲା । କାବୁଲିବାଲା ଝୁଲି ଭିତରୁ କାଜୁ, କିସ୍‌ମିସ୍ ବାହାର କରି ମିନି ହାତକୁ ବଢ଼େଇଲା, ମାତ୍ର ସେ କିଛି ନେଲାନାହିଁ । ଦୁଇଗୁଣ ଭୟ ଆଉ ସନ୍ଦେହରେ ମୋ ଆଣ୍ଠୁ ସନ୍ଧିରେ ମୁହଁ ଲୁଚେଇ ଦେଲା ।

କିଛିଦିନ ପରେ ଦିନେ ସକାଳ ଓଳି ଜରୁରୀ କାମରେ ବାହାରକୁ ଯିବା ସମୟରେ ଦେଖିଲି, ମିନି ଦୁଆର ସାମ୍ନା ବେଞ୍ଚରେ ବସି କ'ଣ ସବୁ ଗପି ଯାଉଛି । ସେହି କାବୁଲିବାଲାଟି ତା' ପାଦ ପାଖରେ ବସି ହସିହସି ସବୁ ଶୁଣୁଛି । ମଝିରେ

ମଝିରେ ପ୍ରସଙ୍ଗକ୍ରମେ ନିଜର ମତାମତ ଖଣ୍ଡିଆ ବଙ୍ଗଳା ଭାଷାରେ ଦେଉଛି । ମିନିର ପାଞ୍ଚବର୍ଷର ଅଭିଜ୍ଞତାରୁ ଜାଣିଛି ଯେ ବାବାଙ୍କୁ ଛାଡ଼ିଦେଲେ ଏପରି ଧୈର୍ଯ୍ୟବାନ୍ ଶ୍ରୋତା ସେ କେବେ ପାଇ ନଥିଲା । ମୁଁ ଦେଖିଲି ତା'ର କ୍ଷୁଦ୍ର ଲୁଗାକାନିଟି ବାଦାମ ଆଉ କିସ୍‌ମିସ୍‌ରେ ପୂର୍ଣ୍ଣ । ମୁଁ କାବୁଲିବାଲାକୁ କହିଲି, "ତାକୁ ଏସବୁ କାହିଁକି ଦେଉଛ ? ଆଉ ଦେବ ନାହିଁ କହି ପକେଟରୁ ଅଧୁଲିଟେ କାଢ଼ି ତାକୁ ଦେଲି । ସେ ନିଃସଙ୍କୋଚରେ ଅଧୁଲିଟି ଗ୍ରହଣ କରି ଝୁଲିରେ ପୂରେଇଲା ।

ଘରକୁ ଫେରି ଦେଖିଲି, ସେଇ ଅଧୁଲିଟିକୁ କେନ୍ଦ୍ରକରି ପୂରା ଗୋଳମାଳ ଆରମ୍ଭ ହୋଇଯାଇଛି । ମିନିର ମା' ଧଳା ଚକ୍‌ଚକ୍ କରୁଥିବା ଜିନିଷଟିକୁ ଧରି ମିନିକୁ ଭୀଷଣ ଗାଳି କରି ପଚାରୁଛନ୍ତି, "ତୁ ଏଇଟିକୁ କେଉଁଠୁ ପାଇଲୁ ?"

ମିନି କହୁଛି, "ମୋତେ କାବୁଲିବାଲା ଦେଇଛି ।"

ଏହା ଶୁଣି ତା'ର ମାଆ କହୁଛନ୍ତି - "ତୁ କାହିଁକି କାବୁଲିବାଲାଠୁଁ ଏହା ନେବାକୁ ଗଲୁ ?"

ମିନି କାନ୍ଦି କାନ୍ଦି କହିଲା, "ମୁଁ ମାଗି ନଥିଲି, ସେ ନିଜେ ଦେଲା ।" ମୁଁ ଆସି ମିନିକୁ ଏହି ବିପଦରୁ ଉଦ୍ଧାର କରି ବାହାରକୁ ନେଇଗଲି । ପରେ ଜାଣିଲି, କାବୁଲିବାଲା ସହ ମିନିର ଏହା ଦ୍ୱିତୀୟ ସାକ୍ଷାତ ନଥିଲା, ଇତି ମଧ୍ୟରେ ସେ ପ୍ରାୟ ପ୍ରତିଦିନ ଆସି କାଜୁବାଦାମ ଲାଞ୍ଚ ଦେଇ ମିନିର ଛୋଟ ହୃଦୟଟିକୁ ଅନେକାଂଶରେ ଅଧିକାର କରିନେଇଛି । ଏକଥା ମଧ୍ୟ ଦେଖିଲି, ଦୁଇବନ୍ଧୁଙ୍କ ମଧ୍ୟରେ ବେଶ୍ ଥଟ୍ଟା ଟାପରା ମଜାଗପ ଚାଲିଛି । ରହମତ୍‌କୁ ଦେଖିବା ମାତ୍ରେ ମୋ ଝିଅ ହସି ହସି ପଚାରୁଥିଲା, "କାବୁଲିବାଲା, ଏ କାବୁଲିବାଲା, ତୁମ ଝୁଲି ଭିତରେ କ'ଣ ଅଛି ?"

ରହମତ୍ ହସିହସି ଅନୁନାସିକ ସ୍ୱରରେ କହୁଥିଲା - 'ହାଁ ତୀ' ।

ଅର୍ଥାତ୍ ତା' ଝୁଲି ଭିତରେ ଯେ ଗୋଟିଏ ହାତୀ ଅଛି, ଏଇଟା ହିଁ କଥାର ମର୍ମ । ଏହି ହାସ ପରିହାସରେ ଉଭୟେ ବେଶ୍ ମଜ୍‌ଜା ଅନୁଭବ କରୁଥିଲେ । ଶରତ ସକାଳରେ ଜଣେ ବୟସ୍କ ଏବଂ ଆଉ ଜଣେ ଅପ୍ରାପ୍ତ ବୟସ୍କା ଶିଶୁର ଅନାବିଳ ହସ ମୋତେ ବେଶ୍ ଆନନ୍ଦ ଦେଉଥିଲା । ସେମାନଙ୍କ ମଧ୍ୟରେ ଆଉ ଗୋଟେ ମଜା କଥା ହେଉଥିଲା - ରହମତ୍ ମିନିକୁ ପଚାରୁଥିଲା, "ଝିଅ, ତୁମେ କ'ଣ ଶ୍ୱଶୁର ଘରକୁ କେବେ ବି ଯିବନି ?"

ବଙ୍ଗାଳୀ ଘରର ଝିଅ ଶୈଶବରୁ 'ଶ୍ୱଶୁର ଘର' ଶବ୍ଦ ସହ ପରିଚିତ । ଆମେ ଟିକେ ଆଧୁନିକ ହୋଇଥିବାରୁ ଶିଶୁକନ୍ୟାକୁ ଏ ନେଇ ସଚେତନ କରେଇ ନାହୁଁ । ସେଥିଲାଗି ରହମତ୍‌ର ପ୍ରଶ୍ନଟିକୁ ସେ ଠିକ୍ ବୁଝି ପାରିନଥିଲା । ତେବେ କଥାଟିର କୌଣସି ଉତ୍ତର ନଦେଇ ଚୁପ୍ ରହିବା ମିନିର ନିହାତି ସ୍ୱଭାବ ବିରୁଦ୍ଧ ଥିଲା । ସେ ଓଲଟି ପଚାରିଲା – "ତୁମେ ଶ୍ୱଶୁର ଘରକୁ ଯିବ ?"



ରହମତ୍ ହାତମୁଠା ଦେଖାଇ କହିଲା – "ମୁଁ ଶ୍ୱଶୁରକୁ ମାରିବି ।" ଏହା ଶୁଣି ମିନି ଶ୍ୱଶୁର ନାମକ ଏକ ଜନ୍ତୁର ଦୁରବସ୍ଥା କଳ୍ପନା କରି ଖୁବ୍ ହସିଲା ।

ଏବେ ତୋଫା ଶରତ ଋତୁ । ଆଗକାଳରେ ଏହି ସମୟରେ ରାଜାମାନେ ଦିଗ୍‌ବିଜୟରେ ବାହାରୁଥିଲେ । ମୁଁ କଲିକତା ଛାଡ଼ି କେବେ ବାହାରକୁ ଯାଇନାହିଁ, ସେଥିପାଇଁ ମୋ ମନଟା ସାରା ପୃଥିବୀରେ ଘୂରି ବୁଲୁଥାଏ । ମୁଁ ଯେପରିକି ମୋରି ଘରକୋଣରେ ଚିରପ୍ରବାସୀ । ବାହାର

ପୃଥିବୀ ଲାଗି ମୋ ମନଟା କେମିତି ଛକପକ ହୁଏ । ବିଦେଶ ନାଁ ଶୁଣିବା ମାତ୍ରେ ମୋ ମନ ସେଇ ଆଡ଼କୁ ଧାଇଁଯାଏ । ସେହିପରି ବିଦେଶୀ ଲୋକଟିଏ ଦେଖିଲେ ମନରେ ହଠାତ୍ ନଦନଦୀ, ପାହାଡ଼, ପର୍ବତ ମଧ୍ୟରେ ଗୋଟେ କୁଡ଼ିଆ ଘରର ଦୃଶ୍ୟ ଉଙ୍କିମାରେ । ଏକ ସ୍ୱାଧୀନ ଜୀବନର ଆନନ୍ଦମୟ ମୁହୂର୍ତ୍ତଗୁଡ଼ିକ କଳ୍ପନାରେ ଭାସିଉଠେ ।

ଦ୍ୱିତୀୟତଃ ମୋର ଏପରି ବୃକ୍ଷ-ବନ୍ଦୀ ପ୍ରକୃତି ଯେ, ଘରଛାଡ଼ି ବାହାରକୁ ଗଲେ ମୁଣ୍ଡରେ ଯେମିତିକି ବଜ୍ରପାତ ହୁଏ । ସେଥିପାଇଁ ସକାଳ ଓଳି ମୋର ଛୋଟ ଘରେ ଟେବୁଲ ସାମ୍ନାରେ ବସି ଏହି କାବୁଲିବାଲା ସାଥିରେ ଗପସପ ଦ୍ୱାରା ମୋର ଭ୍ରମଣ କାମଟା ଅନେକାଂଶରେ ହୋଇଯାଉଥିଲା ।

ଦୁର୍ଗମ ରାସ୍ତାର ଦୁଇପାର୍ଶ୍ୱରେ ରକ୍ତବର୍ଣ୍ଣର ଉଚ୍ଚ ଗିରିଶ୍ରେଣୀ, କେଉଁଠି ସଂକୀର୍ଣ୍ଣ ମରୁପଥରେ ବୋଝବାହି ଓଟର ଦଳ, ତା' ସାଙ୍ଗକୁ ପଗଡ଼ି ପିନ୍ଧା ବଣିକ ଓ ପଥିକମାନେ କେହି ଓଟ ଉପରେ, କେହିବା ପଦବ୍ରଜରେ, କାହା ହାତରେ ବର୍ଚ୍ଛା ତ କାହା ହା ‌ରେ ଚକ୍‌ମକି ଠୁକା ବନ୍ଧୁକ । କାବୁଲିବାଲା ଘାଗଡ଼ା ଗଳାରେ ଭଙ୍ଗା ଭଙ୍ଗା ବଙ୍ଗଳାରେ ନିଜ ଦେଶ ସମ୍ପର୍କରେ ଗପୁଥିବାବେଳେ ମୋ ଆଖି ସାମ୍ନାରେ ସେଇସବୁ ଛବି ଭାସି ଉଠୁଥିଲା ।

ମିନିର ମାଆ ଅତ୍ୟନ୍ତ ଭୟାଳୁ ପ୍ରକୃତିର ଲୋକ । ରାସ୍ତାରେ କିଛି ଗୋଟାଏ ଶବ୍ଦ ଶୁଣିଲେ ତାଙ୍କର ମନେହୁଏ ପୃଥିବୀର ସବୁଯାକ ମାତାଲ ଆମରି ଘରକୁ ଲକ୍ଷ୍ୟକରି ଧାଇଁ ଆସୁଛନ୍ତି । ଏ ପୃଥିବୀ ଚୋର, ମଦୁଆ, ଡାକୁ, ସାପ, ବାଘ, ମେଲେରିଆ, ସଁବାଳୁଆ, ଅସରପୀ ଏବଂ ଇଂରେଜମାନଙ୍କ ଦ୍ୱାରା ପୂର୍ଣ୍ଣ । ଏତେଦିନ ଘରସଂସାର କରି ମଧ୍ୟ ତାଙ୍କ ମନରୁ ଏ ଭୟ ଦୂର ହୋଇନାହିଁ ।

କାବୁଲିବାଲାକୁ ମଧ୍ୟ ସେ ସନ୍ଦେହଭରା ଆଖିରେ ଦେଖୁଥିଲେ । ତା' ପ୍ରତି ବିଶେଷ ନଜର ରଖିବା ଲାଗି ସେ ମୋତେ ବାରମ୍ବାର ଚେତେଇ ଦେଉଥିଲେ । ମୁଁ



ତାଙ୍କର ଏହି ସନ୍ଦେହକୁ ହସି ଉଡ଼େଇ ଦେବାକୁ ଚେଷ୍ଟା କରୁଥିବାବେଳେ ସେ ମୋତେ ଗୋଟିଏ ପରେ ଗୋଟିଏ ପ୍ରଶ୍ନ କରୁଥିଲେ – "କେବେ କ'ଣ କାହାରି ପିଲା ଚୋରି ହୁଏନା ? କାବୁଲ ଦେଶରେ କ'ଣ ଗୁଲାମ ପ୍ରଥା ପ୍ରଚଳିତ ନାହିଁ ? ଜଣେ ଦୀର୍ଘକାୟ କାବୁଲିବାଲା ପକ୍ଷରେ ଛୋଟ ପିଲା ଚୋରି କରି ନେଇଯିବା କ'ଣ ସମ୍ପୂର୍ଣ୍ଣ ଅସମ୍ଭବ ?"

କଥାଟି ଯେ ସମ୍ପୂର୍ଣ୍ଣ ଅସମ୍ଭବ ନୁହେଁ, ତାହା ମୋତେ ମାନିବାକୁ ପଡ଼ିଲା । ତେବେ ଏହା ମୋଟେ ବିଶ୍ୱାସଯୋଗ୍ୟ ନୁହେଁ । ଅବଶ୍ୟ ବିଶ୍ୱାସ କରିବାର ଶକ୍ତି ସମସ୍ତଙ୍କର ସମାନ ନୁହେଁ । ସେଇଥିପାଇଁ ମୋ ପତ୍ନୀଙ୍କ ମନରେ ଭୟ ରହିବା ସ୍ୱାଭାବିକ । ତେବେ ବିନା ଦୋଷରେ ରହମତ୍‌କୁ ଆମ ଘରକୁ ଆସିବା ଲାଗି ମନା କରିପାରିଲିନି ।

ପ୍ରତିବର୍ଷ ମାଘ ମାସ ଅଧାଅଧିରେ ରହମତ୍ ନିଜ ଦେଶକୁ ଚାଲିଯାଏ । ତା' ପୂର୍ବରୁ ସମସ୍ତ ପାଉଣା ଆଦାୟ କରିବାରେ ସେ ବଡ଼ ବ୍ୟସ୍ତ ଥାଏ । ଘରକୁ ଘର ବୁଲିବାକୁ ପଡ଼େ, ତଥାପି ମିନିକୁ ଥରେ ହେଲେ ବି ଦେଖିବାକୁ ଆସେ । ମନେହୁଏ ଉଭୟଙ୍କ ମଧ୍ୟରେ ଯେମିତିକି ଗୋଟେ ବଡ଼ ଧରଣର ଷଡ଼ଯନ୍ତ୍ର ଚାଲିଛି ।

ସକାଳେ ଯେଉଁଦିନ ଆସିପାରେନି ସେଦିନ ସନ୍ଧ୍ୟାରେ ଆସେ । ଅନ୍ଧାରରେ ଘରକୋଣରେ ଢିଲା କୁରୁତାପିନ୍ଧା ଏବଂ ଝୁଲି ପକା ଲମ୍ବା ଲୋକଟିକୁ ଦେଖିରେ ମନରେ ବାସ୍ତବିକ ଆଶଙ୍କା ଆସିବା ସ୍ୱାଭାବିକ । କିନ୍ତୁ ଯେତେବେଳେ ମିନି 'କାବୁଲିବାଲା, ଏ କାବୁଲିବାଲା କହି ହସି ହସି ଧାଇଁ ଆସେ ଏବଂ ଦୁଇ ଅସମ ବୟସର ବନ୍ଧୁଙ୍କ ମଧ୍ୟରେ ସେଇ ପୁରୁଣା ଥଟ୍ଟା ପରିହାସ ଚାଲେ ସେତେବେଳେ ମୋର ସାରା ହୃଦୟ ଆନନ୍ଦରେ ପୂରିଉଠେ ।

ଦିନେ ସକାଳେ ମୋର ସେହି ଛୋଟ କୋଠରିରେ ବସି ପ୍ରୁଫ୍ ସଂଶୋଧନ କରୁଥାଏ । ଶୀତ ସରି ଆସୁଥିଲା । ମାତ୍ର ବିଦାୟ ପୂର୍ବରୁ ଗତ ଦୁଇତିନି ଦିନ ହେବ ଖୁବ୍ କଣକଣି ଜାଡ଼ ପଡ଼ିଥାଏ । ଜାଡ଼ ଶୀତରେ ଯେମିତିକି ସବୁଆଡ଼େ ହାହାକାର ପଡ଼ିଥାଏ । ସକାଳର ନରମ ଖରା ଝରକା ଦେଇ ଟେବୁଲ ତଳେ ମୋ ପାଦ ଉପରେ ଆସି ପଡ଼ିଥାଏ । ମୁଣ୍ଡ ଓ ଗଳାରେ ଗଳାବନ୍ଧ ବାନ୍ଧି ପ୍ରାତଃ ଭ୍ରମଣକାରୀଗଣ ଭ୍ରମଣ ଶେଷକରି ଘରକୁ ଫେରୁଥା'ନ୍ତି । ସମୟ ବୋଧହୁଏ ଆଠଟା ହେବ, ହଠାତ୍ ରାସ୍ତାରେ ଭାରି ପାଟିତୁଣ୍ଡ ଶୁଣାଗଲା । ରାସ୍ତାକୁ ଅନେଇ ଦେଖିଲି, ଆମର ସେଇ ରହମତ୍‌କୁ ଦୁଇଜଣ

ପହରାବାଲା ଧରି ନେଇଯାଉଛନ୍ତି । ତା' ପଛରେ ଚାଲିଛନ୍ତି ଦଳେ କୌତୂହଳୀ ପିଲା । ରହମତ୍‌ର ପିନ୍ଧା ଲୁଗାରେ ରକ୍ତର ଛିଟା ଏବଂ ଜଣେ ପହରାବାଲା ହାତରେ ରକ୍ତାକ୍ତ ଛୁରା । ମୁଁ ଦ୍ୱାର ବାହାରକୁ ଆସି ପହରାବାଲାକୁ ଅଟକେଇଲି ଏବଂ ପଚାରିଲି, "କ'ଣ ଘଟଣା ?" କିଛି ତା' ପାଖରୁ ଏବଂ ଆଉ କିଛି ରହମତ୍ ନିକଟରୁ ଶୁଣି ଜାଣିଲି ଯେ ଆମର ଜଣେ ପଡ଼ୋଶୀ ରାମପୁରୀ ଚଦର କିଣିବା ଲାଗି ରହମତ୍ ଠାରୁ କିଛି ଟଙ୍କା ଉଧାର ନେଇଥିଲା । ମାତ୍ର ସେ ମିଛକହି ସେଇ ପାଉଣା ଶୁଝିବାକୁ ମନା କରିଦେଲା । ସେଇ କାରଣରୁ ପାଟିତୁଣ୍ଡ ହେଉ ହେଉ ରହମତ୍ ତା' ପେଟରେ ଛୁରୀ ଭୂସି ଦେଇଛି ।

ରହମତ୍ ସେଇ ମିଥ୍ୟାବାଦୀ ଉଦ୍ଦେଶ୍ୟରେ ନାନାପ୍ରକାର ଅଶ୍ରାବ୍ୟ ଗାଳି ଦେଉଥାଏ । ଏହି ସମୟରେ ମିନି 'କାବୁଲିବାଲା', ଏ କାବୁଲିବାଲା' ଡାକ ପକେଇ ଘରୁ ବାହାରି ଆସିଲା ।

ରହମତ୍‌ର ମୁହଁ ହଠାତ୍ କୌତୁକ ଭରା ହସରେ ପ୍ରଫୁଲ୍ଲ ହୋଇଉଠିଲା । ଆଜି ତା' କାନ୍ଧରେ ସେଇ ଲମ୍ବା ଝୁଲି ନଥିଲା । ସୁତରାଂ ଝୁଲି ସମ୍ପର୍କରେ ଦୈନିକ ହେଉଥିବା ଆଲୋଚନା ଆଜି ଆଉ ହେଲାନି । ମିନି ସିଧା ପଚାରିଲା, "ତୁମେ ଶ୍ୱଶୁର ଘରକୁ ଯିବ ?"

ରହମତ୍ ହସିଦେଇ କହିଲା, "ସେଇଠିକି ତ ଯାଉଛି ।"

ଦେଖିଲି, ଉତ୍ତରଟା ଆଜି ମିନିର ଆନନ୍ଦଦାୟକ ହେଲା ନାହିଁ । ତଥାପି ରହମତ୍ ହାତ ଦେଖାଇ କହିଲା, "ଶ୍ୱଶୁରକୁ ମାରିଥା'ନ୍ତି, କିନ୍ତୁ କ'ଣ କରିବି, ହାତ ବନ୍ଧା ।"

ସାଂଘାତିକ ଆଘାତ କରିଥିବା ଅପରାଧରେ କିଛି ବର୍ଷ ରହମତ୍‌କୁ ଜେଲ୍ ହେଲା ।

ଏ ଭିତରେ ତା' କଥା ଏକପ୍ରକାର ଭୁଲି ଯାଇଥିଲି । ଦୈନନ୍ଦିନ କାମରେ ବ୍ୟସ୍ତ ରହି ଜଣେ ପର୍ବତଚାରୀ ସ୍ୱାଧୀନ ମଣିଷ କାରାକକ୍ଷରେ କେମିତି ବର୍ଷ ପରେ ବର୍ଷ କଟାଉଛି ତାହା ବୁଝିବାକୁ ମନେ ପଡ଼େନି । ଏପଟେ ଚଞ୍ଚଳମତି ମିନିର ଆଚରଣ ମୋ ପାଇଁ ଅତ୍ୟନ୍ତ ଦୁଃଖଦାୟକ ଥିଲା । ଏତେ ଶୀଘ୍ର ତା'ର ପୁରୁଣା ବନ୍ଧୁକୁ ଭୁଲିଯାଇ ନୂଆ ଘୋଡ଼ା



ତତ୍ତ୍ୱାବଧାରକ ସହ ବନ୍ଧୁତା ସ୍ଥାପନ କରିସାରିଥିଲା । କ୍ରମେ ଜଣେ ଜଣେ କରି ବାନ୍ଧବୀ ତା' ପାଖରେ ଜୁଟିବାକୁ ଲାଗିଲେ । ଏପରିକି ମୋ ଲେଖାପଢ଼ା ଘରେ ମଧ୍ୟ ଏବେ ତାକୁ ବିଶେଷ ଦେଖିବାକୁ ମିଳେନି । ମୁଁ ତ ତା' ଉପରେ ଏକପ୍ରକାର ରାଗିକି ରହିଛି ।

ଜାଣେନି, ଏମିତି କେତେ ବର୍ଷ ବିତି ଯାଇଛି । ପୁଣି ଏକ ଶରତକାଳ ଆସିଛି । ଆମ ମିନିର ବାହାଘର ସମ୍ବନ୍ଧ ବି ସ୍ଥିର ହୋଇଯାଇଛି । ପୂଜା ଛୁଟି ଭିତରେ ତା'ର ବାହାଘର ହେବ । କୈଳାସବାସିନୀ ଦେବୀ ଦୁର୍ଗାଙ୍କ ସଙ୍ଗେ ସଙ୍ଗେ ମୋ ଘରର ଆନନ୍ଦମୟୀ ମଧ୍ୟ ପିତୃଭବନ ଅନ୍ଧାର କରିଦେଇ ପତିଗୃହକୁ ଯାତ୍ରା କରିବ ।

ଆଜିର ପ୍ରଭାତଟି ଖୁବ୍ ସୁନ୍ଦର ଏବଂ ଆକର୍ଷଣୀୟ । ବର୍ଷା ପରେ ଏଇ ଶରତଧୁଆ ନୂଆ ଖରା ଟାଙ୍ଗଣ ପରି ସ୍ୱଚ୍ଛ ଏବଂ ସୁନା ପରି ରଙ୍ଗୀନ୍ ଦିଶୁଛି । ଏପରିକି କଲିକତାର ଗଳିକନ୍ଦି ଭିତରେ ଅପରିଚ୍ଛନ୍ନ ଖୁନ୍ଦାଖୁନ୍ଦି

ଇଟାଘରଗୁଡ଼ିକ ଉପରେ ବି କଅଁଳ ଖରାର ଆଭା ଏକ ଅପରୂପ ଲାବଣ୍ୟ ବିସ୍ତାର କରିଅଛି ।

ଆଜି ରାତି ନପାହୁଣୁ ମୋ ଘରେ ସାହାନାଇ ବାଜି ଉଠିଛି । ମଙ୍ଗଳ ମହୁରୀ ଯେପରିକି ମୋ ଛାତିର ପଞ୍ଜରାହାଡ଼ ଭିତରୁ କଇଁ କଇଁ କାନ୍ଦି ବାଜି ଉଠୁଛି । ଅତି କରୁଣ ଭୈରବୀ ରାଗିଣୀ ମୋର ଆସନ୍ନ ବିଚ୍ଛେଦ ଯନ୍ତ୍ରଣାକୁ ଶରତର ଖରା ସହ ସାରା ବିଶ୍ୱବ୍ରହ୍ମାଣ୍ଡରେ ବିଛାଡ଼ି ଦେଇଛି । ଆଜି ମୋ ମିନିର ବାହାଘର । ସକାଳରୁ ଭାରି ଭିଡ଼, ଗହଳ ଚହଳ, ଲୋକବାକଙ୍କ ଯିବାଆସିବା ଲାଗି ରହିଛି । ଘର ଆଗ ପ୍ରାଙ୍ଗଣରେ ବାଉଁଶ ବାନ୍ଧି ଚାନ୍ଦୁଆ ଟଙ୍ଗା ଯାଇଛି । ଘର ଭିତରେ ଏବଂ ବାରଣ୍ଡାରେ ରୋଶଣିବାଲାର ଝାଡ଼ ଆଲୁଅ ଟାଙ୍ଗିବାର ଠୁଙ୍ଗ୍‌ଠାଙ୍ଗ୍ ଶବ୍ଦ ହେଉଛି, ଡାକ ହାଁକର ସୀମା ନାହିଁ ।

ମୁଁ ମୋ ପଢ଼ାଘରେ ବସି ହିସାବ ତଦାରଖ କରୁଛି, ଏହି ସମୟରେ ରହମତ୍ ଆସି ସଲାମ କରି ଠିଆହେଲା ।



ପ୍ରଥମେ ମୁଁ ତାକୁ ଚିହ୍ନି ପାରିଲିନି । ତାହାର ସେ ` ଲି ନାହିଁ, ମୁଣ୍ଡରେ ଲମ୍ୱାବାଳ ନାହିଁ, ପୁଣି ଦେହରେ ପୂର୍ବ ତେଜ ନାହିଁ । ଶେଷରେ ତା' ହସ ଦେଖି ତାକୁ ଚିହ୍ନିଲି । ପଚାରିଲି, "କିରେ ରହମତ୍ ! କେବେ ଆସିଲୁ ?"

ସେ କହିଲା, "କାଲି ସନ୍ଧ୍ୟାରେ ଜେଲ୍‌ରୁ ମୁକ୍ତି ପାଇଲି ।"

କଥାଟା କାନକୁ କେମିତି ଖଟ୍‌କରି ଲାଗିଲା । କୌଣସି ଖୁନୀକୁ ଏଯାଏଁ ସାମ୍ନାସାମ୍ନି ଦେଖିନି । ତାକୁ ଦେଖି ମୋ ଭିତରଟା କେମିତି ସଙ୍କୁଚିତ ହୋଇଗଲା । ମନେ ମନେ ଭାବିଲି, ଆଜି ଏହି ଶୁଭ ଦିନରେ ଲୋକଟା ଯେତେ ଶୀଘ୍ର ଚାଲିଯିବ ସେତେ ମଙ୍ଗଳ । ମୁଁ ତାକୁ କହିଲି, "ଆଜି ଆମ ଘରେ ଗୋଟେ ଜରୁରୀ କାମ ଅଛି, ମୋତେ ସବୁ ବୁଝାସୁଝା କରିବାକୁ ପଡୁଛି, ତେଣୁ ତୁ ଆଜି ଯା' ।"

ମୋ କଥା ଶୁଣିବା ମାତ୍ରେ ସେ ଯିବାକୁ ବାହାରିଲା ; ମାତ୍ର କବାଟ ପାଖରୁ ଫେରିଆସି ଟିକିଏ ଇତସ୍ତତଃ ହୋଇ କହିଲା, "ଥରେ ମିନିବେଟୀକୁ ଦେଖି ପାରିବିନି ?"



ତା' ମନରେ ହୁଏତ ଧାରଣା ଥିଲା, ମିନି ସେମିତି ଥିବ । ପୂର୍ବପରି 'କାବୁଲିବାଲା, ଏ କାବୁଲିବାଲା' କହି ଧାଇଁ ଆସିବ । ତା'ର ସେହି ପୁରୁଣା କୌତୁକିଆ ହସ, ଥଟ୍ଟାଟାପରାରେ କୌଣସି ବ୍ୟତିକ୍ରମ ନଥିବ । ଏପରିକି ପୂର୍ବ ବନ୍ଧୁତ୍ୱକୁ ସ୍ମରଣ କରି କେହି ବନ୍ଧୁ ନିକଟରୁ

ଗୋଟିଏ ବାକ୍ସ ଅଙ୍ଗୁର, କାଗଜ ଠୁଙ୍ଗାରେ କିଛି କିସ୍‌ମିସ୍ ଆଉ ବାଦାମ ସଂଗ୍ରହ କରି ନେଇ ଆସିଥିଲା । ଏବେ ତା' କାନ୍ଧରେ ସେଇ ପୁରୁଣା ଝୁଲିଟି ଆଉ ଝୁଲୁ ନଥିଲା ।

ମୁଁ କହିଲି, "ଆଜି ଘରେ ଅନେକ କାମ, ମିନି କିମ୍ବା ଆଉ କାହା ସହ ତମର ଭେଟ ହୋଇ ପାରିବନି ।"

ଏକଥା ଶୁଣି ସେ ଟିକିଏ କ୍ଷୁଣ୍ଣ ହେଲା । ଚୁପ୍‌ଚାପ ଠିଆ ହୋଇ ଅପଲକ ମୋ ମୁହଁକୁ କିଛି ସମୟ ଚାହିଁଲା । ତା'ପରେ 'ବାବୁ ସଲାମ୍' କହି ଦ୍ୱାର ସେପଟକୁ ଚାଲିଗଲା ।



ମୋ ମନରେ କେମିତି ଗୋଟେ ଅଜଣା ବ୍ୟଥା ସୃଷ୍ଟି ହେଲା । ଭାବିଲି ତାକୁ ପୁଣି ଡାକିବି, ଏହି ସମୟରେ ଦେଖିଲି ସେ ନିଜେ ଫେରି ଆସୁଛି ।

ପାଖକୁ ଆସି କହିଲା, "ଝିଅଟି ପାଇଁ ଏହି ଅଙ୍ଗୁର, କିଛି କିସ୍‌ମିସ୍ ଏବଂ ବାଦାମ ଆଣିଥିଲି, ତାକୁ ଦେଇଦେବେ ।"

ମୁଁ ସେଗୁଡ଼ିକ ନେଇ ଦାମ ଦେବାକୁ ଉଦ୍ୟତ ହେବାରୁ ସେ ହଠାତ୍ ମୋ ହାତକୁ ଚାପି ଧରିଲା ଏବଂ କହିଲା, "ଆପଣଙ୍କର ଆତିଥ୍ୟ ଓ ଦୟା ମୋର ସବୁଦିନ ମନେ ରହିବ । ମୋତେ ପଇସା ଦିଅନ୍ତୁନି । ବାବୁ, ତୁମର ଯେମିତି ଝିଅଟିଏ ଅଛି, ସେହିପରି ଦେଶରେ ମୋର ଝିଅଟିଏ ଅଛି । ତାହାରି କଥା ମନେ ପକେଇ ତୁମ ଝିଅ ଲାଗି କିଛି କିଛି ଫଳ ନେଇ ଆସେଁ, ମୁଁ ତ ବେପାର କରିବାକୁ ଆସିନି ।"

ଏହା ବାଦେ ତା'ର ଢିଲା ପାଇଜାମା ଭିତରେ ହାତ ପୂରେଇ ଛାତି ପାଖରୁ ଖଣ୍ଡେ ମଇଳା କାଗଜ ବାହାର କଲା । ବହୁ

ଯତ୍ନରେ ଭାଙ୍ଗ ଖୋଲି ଦୁଇ ହାତରେ ମୋ ଟେବୁଲ ଉପରେ ମେଲି ଧରିଲା ।

ଦେଖିଲି କାଗଜ ଉପରେ ଏକ କୁନି ହାତର ଛାପ । ଫଟୋଗ୍ରାଫ୍ ନୁହେଁ, ତୈଳଚିତ୍ର ନୁହେଁ, ହାତରେ କିଛି ରଙ୍ଗବୋଳି କାଗଜ ଉପରେ ତା'ର ଛାପ ନେଇ ଆସିଛି । ଝିଅର ଏହି ସ୍ମୃତିକୁ ଛାତି ପାଖରେ ରଖି ରହମତ୍ ପ୍ରତିବର୍ଷ କଲିକତା ରାସ୍ତାରେ ଫଳ ବିକିବାକୁ ଆସେ ।

ସେଇ ଶିଶୁଟିର କୋମଳ ହାତର ସ୍ପର୍ଶ ଯେମିତିକି ତା'ର ବିରହୀ ଛାତି ଭିତରେ ସୁଧାବାରି ସିଞ୍ଚନ କରେ ।

ଏହାଦେଖି ମୋ ଆଖି ଛଳଛଳ ହୋଇ ଆସିଲା । ସେଇ ମୁହୂର୍ତ୍ତରେ ସେ ଯେ ଜଣେ କାବୁଲି ଫଳ ବିକାଳି ଆଉ ମୁଁ ଯେ ଜଣେ ସମ୍ଭ୍ରାନ୍ତ ବଙ୍ଗାଳୀ ତାହା ଭୁଲିଗଲି । ସେଇ କୁନି ହାତ ଚିହ୍ନଟି ମୋତେ ମୋର ମିନିକୁ ମନେ ପକେଇ ଦେଲା । ମୁଁ ସାଙ୍ଗେ ସାଙ୍ଗେ ତାକୁ ଅନ୍ତଃପୁରରୁ ଡାକି ପଠେଇଲି । ଅନ୍ତଃପୁରରୁ ଏ ନେଇ ଆପତ୍ତି ଉଠିଥିଲା, ମାତ୍ର ମୁଁ କୌଣସି କଥା କର୍ଣ୍ଣପାତ କଲିନାହିଁ ।



ଲାଲ୍ ରଙ୍ଗର ପାଟ ପିନ୍ଧି, କପାଳରେ ଟିପାଟିପା ଚନ୍ଦନ ଅଙ୍କାହୋଇ ବଧୂବେଶରେ ସଜିତା ମିନି ଲାଜ ଲାଜ ହୋଇ ମୋ ପାଖରେ ଆସି ଠିଆ ହେଲା ।

ତାକୁ ଦେଖି କାବୁଲିବାଲା ପୂରା ଥତମତ ହୋଇଗଲା । ତା' ସହ ପୁରୁଣା ଆଳାପ ହୋଇ ପାରିଲାନି । ଶେଷରେ ହସି ହସି ପଚାରିଲା, "ଝିଅ, ତୁମେ ଶ୍ୱଶୁର ଘରକୁ ଯିବ ?"

ଏବେ କିନ୍ତୁ ମିନି ଶ୍ୱଶୁର ଘର କ'ଣ ବୁଝିଲାଣି ।

ତେବେ ପୂର୍ବପରି କିଛି ଉତ୍ତର ଦେଇପାରିଲାନି । ରହମତ୍‌ର କଥା ଶୁଣି ଲାଜରେ ଆରକ୍ତ ହୋଇ ମୁହଁ ଫେରେଇ ଠିଆ ହେଲା । କାବୁଲିବାଲା ସହ ମିନିର ପ୍ରଥମ ସାକ୍ଷାତ ଦିନଟି ମୋର ମନେ ପଡ଼ିଲା, ମନଟା କେମିତି ଦୁଃଖରେ ବ୍ୟଥିତ ହେଲା ।

ମିନି ଚାଲିଯିବା ପରେ ରହମତ୍ ଦୀର୍ଘନିଃଶ୍ୱାସ ପକେଇ ଭୂଇଁରେ ବସି ପଡ଼ିଲା । ଭାବିଲା, ତା' ଝିଅଟି ବି ଏମିତି ବଡ଼ ହୋଇଯାଇଥିବ, ତା' ସଙ୍ଗେ ଆଉ ପୁରୁଣା ଆଳାପ କରିପାରିବନି, ତାକୁ ଆଉ ପୂର୍ବଭଳି ଦେଖିପାରିବନି । ଗଲା ଆଠବର୍ଷ ଭିତରେ ତା'ର ଯେ କ'ଣ ହୋଇଥିବ, ସେ କଥା କିଏ ବା ଜାଣେ !



ଶରତ ସକାଳର ସ୍ନିଗ୍ଧ ସୂର୍ଯ୍ୟକିରଣକୁ ଛୁଇଁ ସାହାନାଇ ବାଜିବାକୁ ଲାଗିଲା । କଲିକତାର କେଉଁ ଏକ ଗଳିରେ ବସି ରହିଥିବା ରହମତ୍ ଆଖିରେ ଭାସି ଉଠୁଥିଲା ସୁଦୂର ଆଫଗାନିସ୍ଥାନର ଏକ ମରୁପର୍ବତର ଦୃଶ୍ୟ ।

ମୁଁ ଖଣ୍ଡେ ନୋଟ ନେଇ ତାକୁ ଦେଲି । କହିଲି, "ରହମତ୍, ତମେ ତୁମ ଝିଅ ନିକଟକୁ ଫେରିଯାଅ, ତୁମ ଦୁହିଁଙ୍କର ମିଳନରେ ମିନିର ମଙ୍ଗଳ ହେବ ।"

ଏହି ଟଙ୍କା ଦାନକରି ବିବାହ ଲାଗି ହୋଇଥିବା ହିସାବରୁ ଗୋଟେ ଯୋଡ଼େ କାର୍ଯ୍ୟକ୍ରମ କାଟିଦେବାକୁ ପଡ଼ିଲା । ଯେମିତି ମନେ କରିଥିଲି ସେମିତି ଝାଡ଼ ଆଲୁଅ ଦେଇ ପାରିଲିନି, ଗଡ଼ରୁ ନାମକରା ବାଜାଦାରି ଅଣାଗଲାନି, ଅନ୍ତଃପୁରବାସିନୀମାନେ ଅତ୍ୟନ୍ତ ଅସନ୍ତୋଷ ପ୍ରକାଶ କଲେ । କିନ୍ତୁ ଆନନ୍ଦଭରା ମଙ୍ଗଳମୟ ଆଲୋକରେ ମୋର ଶୁଭ ଉତ୍ସବ ଆହୁରି ଉଜ୍ଜ୍ୱଳ ଦିଶୁଥିଲା ।

Printed at : Pushpak Press Pvt. Ltd., Okhla Indl. Area, Phase-I, New Delhi-20

